ଲିଓ ଟଲ୍‌ଷ୍ଟୟ୍

# ସିଂହ ଓ କୁକୁରଛୁଆ



# ସିଂହ ଓ କୁକୁରଛୁଆ

ଥରେ ଲଣ୍ଡନରେ ବନ୍ୟ ପଶୁମାନଙ୍କର ପ୍ରଦର୍ଶନୀ ଚାଲିଥାଏ। ଏହି ପ୍ରଦର୍ଶନୀ ଦେଖିବା ପାଇଁ ଲୋକମାନଙ୍କୁ ପଇସା ଦେବାକୁ ପଡ଼ୁଥାଏ, କିମ୍ବା ବଣୁଆ ଜନ୍ତୁମାନଙ୍କର ଖାଦ୍ୟ ଲାଗି ବିରାଡ଼ି ବା କୁକୁର ଆଣିବାକୁ ପଡ଼ୁଥାଏ।

ବନ୍ୟ ପଶୁ ଦେଖିବା ପାଇଁ ଜଣେ ଲୋକ ବାଟରୁ କୁକୁରଛୁଆଟିଏ ଧରିଆଣି ପ୍ରଦର୍ଶନୀ ପାଖରେ ପହଞ୍ଚିଲା। ଲୋକଟିକୁ ଭିତରକୁ ଛାଡ଼ି ଦିଆଗଲା। କିନ୍ତୁ କୁକୁର-ଛୁଆଟିକୁ ସିଂହର ପିଞ୍ଜରା ଭିତରକୁ ପକାଇ ଦିଆଗଲା।

କୁକୁରଛୁଆଟି ଦୁଇଗୋଡ଼ ମଝିରେ ଲାଞ୍ଜ ରଖି ପିଞ୍ଜରାର ଗୋଟିଏ କଣରେ ଲୁଚିବାର ଚେଷ୍ଟା କଲା କିନ୍ତୁ ସିଂହ ଆଗେଇ ଆସି ତାକୁ ସୁଙ୍ଘିବାରେ ଲାଗିଲା।

ଏହା ଦେଖି କୁକୁରଛୁଆଟି ଭୟରେ ଓଲଟି ପଡ଼ି ଗୋଡ଼ ଟେକି ଲାଞ୍ଜ ହଲାଇଲା।

ସିଂହ ତା'ର ଗୋଡ଼ରେ ତାକୁ ଓଲଟାଇ ଦେଲା।

ଏହାପରେ କୁକୁରଛୁଆଟି ଗୋଡ଼ ଜାକି କୁଜା ହୋଇ ବସି ରହିଲା।

ସିଂହ ତା'ର ମୁଣ୍ଡ ଏପଟ ସେପଟ କରି ଏହି ଛୋଟ ପ୍ରାଣୀଟିକୁ ଦେଖିବାକୁ ଲାଗିଲା କିନ୍ତୁ ତା'ର କ୍ଷତ କଲା ନାହିଁ।

ଯେତେବେଳେ ସିଂହକୁ ଖାଇବା ପାଇଁ ମାଂସ ଦିଆଗଲା ସେ ସେଥିରୁ ଟିକେ କୁକୁରଛୁଆକୁ ଖାଇବାକୁ ଦେଲା।

ରାତିରେ ସିଂହ ଶୋଇଲାବେଳେ କୁକୁରଛୁଆ ତା ପାଖକୁ ଆସି ତା'ର ଗୋଡ଼ ଉପରେ ମୁଣ୍ଡ ରଖି ଶୋଇପଡ଼ିଲା।

ସେହିଦିନଠାରୁ ଗୋଟିଏ ପିଞ୍ଜରାରେ ସିଂହ ଏବଂ କୁକୁରଛୁଆ ବାସ କଲେ। ସିଂହ କୁକୁରଛୁଆର କିଛି କ୍ଷତି କଲା ନାହିଁ। ସେମାନେ ଦୁହେଁ ଏକାଠି ଖାଇଲେ, ଶୋଇଲେ ଏବଂ ଖେଳିଲେ।

ଦିନେ ଜଣେ ଲୋକ ପ୍ରଦର୍ଶନୀ ଦେଖିବାକୁ ଆସି କୁକୁରଛୁଆଟି ତାଙ୍କର ବୋଲି ଚିହ୍ନି ପାରିଲେ ଏବଂ ତାକୁ ଫେରାଇ ଦେବାକୁ ଦାବି କଲେ। ଯେତେବେଳେ ପ୍ରଦର୍ଶନୀର ମାଲିକ କୁକୁରଛୁଆଟିକୁ ପିଞ୍ଜରା ଭିତରୁ ବାହାରକୁ ଆଣିବାକୁ ଚେଷ୍ଟା କଲେ ସେତେବେଳେ ସିଂହ ତା'ର କେଶର ଫୁଲାଇ ଗର୍ଜନ କଲା।



ଏହାପରେ ଏକ ବର୍ଷ ଧରି ସେମାନେ ଏକାଠି ଗୋଟିଏ ପିଞ୍ଜରାରେ ରହିଲେ। ବର୍ଷକ ପରେ କୁକୁରଛୁଆଟି ରୋଗରେ ପଡ଼ି ମରିଗଲା। ଏହାଦେଖି ସିଂହ ଖାଇବା ପିଇବା ଛାଡ଼ି ଦେଲା। କୁକୁରଛୁଆଟିର ମୃତ ଦେହକୁ ଗୋଡ଼ରେ ଏପଟ ସେପଟ କରି ଗୁଡ଼ିବାରେ ଲାଗିଲା।



ଯେତେବେଳେ ସିଂହ ଜାଣି ପାରଲା କୁକୁରଛୁଆଟି ମରଯାଇଛି ସେତେବେଳେ ହଠାତ୍ ସେ ଡେଇଁ କେଶର ଫୁଲାଇ ଲାଞ୍ଜ ଏପଟ ସେପଟ ପିଟି ଲୁହାବାଡ଼ରେ ଧକା ମାରଲା ଏବଂ ପିଞ୍ଜରାର ଲୁହାଛଡ଼ ଏବଂ ଚଟାଣ କୁ କାମୁଡ଼ବାରେ ଲାଗିଲା ।

ଦନସାରା ସେ ଏହପର ଅସ୍ଥିର ଭାବରେ ଏପଟ ସେପଟ ଦୌଡ଼ଲା ଗର୍ଜ୍ଜନ କଲା ଏବଂ ବେଳେ ବେଳେ କୁକୁରର ମୃତ ଦେହ ପାଖରେ ଶୋଇ ପଡ଼ୁଥିଲା । ପ୍ରଦର୍ଶନୀର ମାଲକ ମୃତ କୁକୁରଛୁଆଟିକୁ ପିଞ୍ଜରା ଭିତରୁ ବାହାର କରବାକୁ ଚେଷ୍ଟା କଲେ କନ୍ତୁ ସିଂହ କାହାରକୁ ଆସିବାକୁ ଦେଲା ନାହଁ ।

ସିଂହ କାଳେ ଦୁଃଖ ଭୁଲଯିବ ବୋଲ ମାଲକ ଆଉ ଗୋଟିଏ କୁକୁରଛୁଆ ପିଞ୍ଜରା ଭିତରକୁ ଛାଡ଼ ଦେଲେ, କନ୍ତୁ ସିଂହ ତତ୍‌କ୍ଷଣାତ୍ ନୂଆ ଛୁଆଟିକୁ ଖଣ୍ଡ ଖଣ୍ଡ କର ଚର ଦେଲା । ଏହାପରେ ସିଂହ ତା'ର ମୃତ ବନ୍ଧୁର ଦେହଟିକୁ ଗୋଡ଼ରେ ଜାବୁଡ଼ ଧର ପାଞ୍ଚଦନ ଅନଦ୍ରାରେ କଟାଇ ଦେଲା ।

ଷଷ୍ଠଦନ ପିଞ୍ଜରା ଭିତରେ ସିଂହର ମୃତ ଦେହ ପଡ଼ଥିବାର ଦେଖାଗଲା ।



# ଇଗଲ୍ ପକ୍ଷୀ

ଗୋଟିଏ ଇଗଲ୍ ପକ୍ଷୀ ସମୁଦ୍ରଠାରୁ ଅନେକ ଦୂରରେ ଥିବା ରାସ୍ତାକଡ଼ର ଏକ ଗଛରେ ବସା ବାନ୍ଧିଥିଲା ଏବଂ କେତେଗୁଡ଼ିଏ ଛୁଆ ଦେଇଥିଲା ।

ଦିନେ ଇଗଲ୍ ପକ୍ଷୀ ଗୋଡ଼ରେ ବଡ଼ ମାଛଟିଏ ଧରି ଘରକୁ ଫେରୁଥିବା ବେଳେ ବସା ନିକଟରେ ଅନେକ ଲୋକ କାମ କରୁଥିବାର ଦେଖିଲା । ମାଛ ଦେଖି ଲୋକମାନେ ଗଛ ଚାରିପଟେ ଘେରିଗଲେ ଏବଂ ପାଟିତୁଣ୍ଡ କରି ଇଗଲ୍ ଆଡ଼କୁ ଟେକା ପଥର ଫିଙ୍ଗିବାକୁ ଲାଗିଲେ ।

ଏହା ଦେଖି ସେ ମାଛ ତଳକୁ ପକାଇ ଦେଲା ଏବଂ ଲୋକମାନେ ଖୁସିରେ ମାଛଟିକୁ ନେଇ ଚାଲିଗଲେ ।

ଇଗଲ୍ ତା'ର ବସାରେ ପହଞ୍ଚିବାକ୍ଷଣି ଛୁଆମାନେ ମୁଣ୍ଡ ଟେକି ଆହାର ଖୋଜିବାକୁ ଲାଗିଲେ ।



କିନ୍ତୁ ସେ ଅନେକ କ୍ଳାନ୍ତ ହୋଇ ପଡ଼ିଥିଲା ଏବଂ ପୁଣି ଥରେ ସମୁଦ୍ର ଆଡ଼କୁ ଉଡ଼ିଯିବାକୁ ତା'ର ଶକ୍ତି ନଥିଲା । ଏହାପରେ ସେ ତା'ର ଡେଣାରେ ଛୁଆମାନଙ୍କୁ ଘୋଡ଼ାଇ ତାଙ୍କର ଛୋଟ ପରକୁ ଆଉଁଷିବାରେ ଲାଗିଲା ଯେପରି କି ସେମାନେ ଆହାର ପାଇଁ ଟିକିଏ ଅପେକ୍ଷା କରନ୍ତି । କିନ୍ତୁ ଛୁଆମାନେ ଅସ୍ଥିର ହୋଇ ଆହାର ଖୋଜିବାକୁ ଲାଗିଲେ ।



ଇଗଲ୍ ଏହାପରେ ତାଙ୍କଠାରୁ ପଳାଇ ଯାଇ ଗଛ ଅଗର ଏକ ଡାଳରେ ବସି ପଡ଼ିଲା । କିନ୍ତୁ ଛୁଆମାନେ ଭୋକରେ ଅସ୍ଥିର ହୋଇ ଜୋରରେ ପାଟିତୁଣ୍ଡ କରିବାକୁ ଲାଗିଲେ ।

ଶେଷରେ ଇଗଲ୍ ଏକ ଚିତ୍କାର କରି ଡେଣା ମେଲାଇ ସମୁଦ୍ର ଆଡ଼କୁ ଉଡ଼ିଗଲା । ସନ୍ଧ୍ୟାରେ ସେ ଆଉ ଗୋଟିଏ ବଡ଼ ମାଛ ଧରି ଆସ୍ତେ ଆସ୍ତେ ଉଡ଼ି ଘରକୁ ଫେରିଲା ।

ଗଛ ପାଖରେ ପହଞ୍ଚି ସେ ଲୋକମାନେ ଅଛନ୍ତି କି ନାହିଁ ବୋଲି ଦେଖିବାକୁ ଲାଗିଲା। କେହି ନଥିବାର ଦେଖି ଡେଣା ଜାକି ଚଞ୍ଚୁଳ ବସାରେ ନେଇ ମାଛଟିକୁ ରଖିଦେଲା।

ମାଛଟିକୁ ଦେଖି ଛୁଆମାନେ ଅଣ୍ଟା ମେଲାଇ ଖୁସି ହେଲେ ଏବଂ ତାଙ୍କର ମାଆ ମାଛ ଖଣ୍ଡ ଖଣ୍ଡ କରି ଛୁଆମାନଙ୍କୁ ଖୁଆଇବାକୁ ଲାଗିଲା।



Л. Толстой
ЛЕВ И СОБАЧКА
На языке ория

ଅନୁବାଦ: ସୁଜାତା ଚକ୍ରବର୍ତ୍ତୀ

ଚିତ୍ରାଙ୍କନ: ଭ. ଦୁଭିଦୋଭ

ଓଡ଼ିଆ ଅନୁବାଦ ଏବଂ ଚିତ୍ରାଙ୍କନ ପ୍ରଗତି ପ୍ରକାଶନୀ ଭବନ୍ ଦ୍ୱାରା କରାଯାଇଛି ।
ପ୍ରଥମ ପ୍ରକାଶ-୧୯୭୫



ପ୍ରଗତି ପ୍ରକାଶନୀ ଭବନ
ମସ୍କୋ

T $\frac{70801-958}{014(01)-76}$ 806-75